# ଅଚ୍ୟୁତାନନ୍ଦ ମାଳିକା

ଓ

## ହାଡ଼ୁଦାସଙ୍କ ମାଳିକା



ପ୍ରକାଶକ—ଶ୍ରୀ ରାମଚନ୍ଦ୍ର ନାଥ
ଗୋବିନ୍ଦପୁର, ପୋ: ଜରପଡ଼ା, କଟକ

ମୂଲ୍ୟ ଟ ୦ ।୵ ତିନିଅଣା ମାତ୍ର

# ଅଚ୍ୟୁତାନନ୍ଦ ମାଳିକା

## ଓ

## ହାଡ଼ିଦାସଙ୍କ ମାଳିକା

### ପ୍ରଥମଛାନ୍ଦ

ନାମ ଭଜନେ ନକର ହେଳା ହେ, ଆସି ଘଟିଲଣି ବେଳା ।
ଅହର୍ନିଶି ଭଜ କଳିଙ୍କି ମନ୍ତ୍ରକୁ କଣ୍ଠେ କର ଜପାମାଳା ।୧ ।
କାଳିଆବୋଦା ଯୋବର୍‌, ସବୁ ଖଣ୍ଡ୍ରଜ୍ଞାନ ହେବେ ଧର୍‌ ।
କୁମ୍ଭି ପାନ୍ଥିଅଙ୍କ ମାଂସ ଶୁଦ୍ଧ ଅଟେ ଖାଇବେ ତାଙ୍କ ବମଳା
ଭକ୍ତମାନେ ମେଳ ହେବେ, ଆସି ରତ୍ନ ବଟରେ ମିଳିବେ ।
ବ୍ରହ୍ମ ଏକାକ୍ଷର ରତ୍ନବଟଠାରେ ପଚ୍ଛୁରୁଥିବେ ଶାରଳା ।୩।
ସଦଗୁରୁ ସେବିଥିଲେ ଭକ୍ତେ ପରୀକ୍ଷା ଦେବଟି ଭଲେ ।
ବ୍ରହ୍ମ ଏକାକ୍ଷର ଛନ୍ଦ ନାପରିଲେ ଦେବୀ ମୋଡିବେଟି ଗଳା।୪
ପ୍ରଭୁ ସଙ୍ଗେ ସଙ୍ଗି ହୋଇ ଭକ୍ତେ ଭ୍ରମଣ କରିବେ ମହୀ ।
ଜ୍ୟୋତି ଦରଶନ ଯାହାଙ୍କର ଥିବ ସେମାନେଦେଖିବେଖେଳା
ପାଷାଣ୍ଡୀ ହୋଇବେ ଛୁଣ୍ଡ ଆସି ବରଜା ମୋଡିବେ ମୁଣ୍ଡ ।
ବେଦନି ଭାଇ ବେଦନି ଅଶ୍ୱପରେ ବିଜେ ବଳରାମ ଚକାଡୋଳା।୬
ଭାଠମାଳିଆ ଭକତ ଯେତେଥ ଫୁଲମାଳି ଉତ୍ତମତ ।
ଚିତା ଛିତା ଧେନ ଅଗ୍ନିଆ ହୋଇବେ ତାଙ୍କୁଖାଇବେମଙ୍ଗଳା
ମାଛ ମାଂସ ଖିଆ ଭକ୍ତ ଆଜ ଯେତେ ଛନ୍ତି ଅବଧୂତ
ଚୌଷଠି ଯୋଗିନୀ ଏହାଙ୍କୁ ଖାଇବେ ରକ୍ତ ଶୋଷି ମୋଡ଼ି ଗଳା
ହୋଇଗଲେ ଛପ୍ନକୋଟି, ସବୁ ଲୀଳା ହୋଇଯିବ ଶେଷ ।
କଳଙ୍କି ମୂରତି ଲୀଳାଙ୍ଗରେ ଛନ୍ତି ଦେଖିବ ପ୍ରଭୁଙ୍କ ମେଳା ।୯

## ଦ୍ୱିତୀୟ ବାଣୀ

କହେ ଅଚ୍ୟୁତ ଭାବନା, କହୁଁ କହୁଁ କଳି ଘୋଟିଣ ଗଲ ଯେ, କାଳରୂପ ନାହିଁ ଦରଶନ ସୁଜନେ ହେ ।୧। ସୁଖେଟି ଏଣୁ ଅଚ୍ୟୁତ, ଖଳ ଗୋଳ ହେଲ ବେଳକୁ ବେଳ ଯେ; ଦୁଷ୍ଟେ ମାତ ଘେରିବେ ପ୍ରବଳ । ସୁଜନେ ହେ ।୨। ଗୀତ ଅଚ୍ୟୁତ ଯୋଗଇ, ଗୁପତେ ରହି ସେ ଲୀଳା କରଇ ଯେ, ଗଣ୍ଡି ବେଳେ ପ୍ରକାଶିବି ମୁହିଁ । ସୁଜନେ ହେ ।। ଘୋଷନ୍ତି ଅଚ୍ୟୁତ ଗୀତେ, ଘଟିଣ ଯିବ ଠକ ଗୋଷ୍ଠୀକେତେ ଯେ, ଧର୍ମ ନ ଚେତବେ କେହି ଚିତ୍ତେ । ସୁଜନେ ହେ ।୪। ଭଲ ଯେ ଅଚ୍ୟୁତ ଭଣି, ଓନବାଂଶରେ ନେଇ ଅଙ୍କ ଯ ଣି ଯେ, ଭାଇଁ ଆସିବେ ପୂର୍ବ ସଇନ । ସୁଜନେ ହେ ।୫ ଚେତାଇ କହେ ଅଚ୍ୟୁତ. ଗୃହଧନ ରତ୍ନ ଅଙ୍କରେ ଚେତ ଯେ; ଚେତା ଅବଶ୍ୟ ବୁଡ଼ିଯିବ ତ । ସୁଜନେ ହେ ।। ଛଚନ୍ଦେ ଅଚ୍ୟୁତ କହେ ଜଗଥାଅ ମୋର ସକଳ ପୋଏ ଯେ, ଯତ୍ନେ ନାମରେ କର ଉପାୟେ । ସୁଜନେ ହେ ।୭। ଝଗଡା ଅଚ୍ୟୁତ କଥା;ଝଡ଼େ ପଶିବେ ଯେ ସକଳପୋତା ଯେ ଝର କରୁଥିବେ ମୋତେଚିନ୍ତା । ସୁଜନେ ହେ ।୮। ନଷ୍ଟାବାଣୀ ଅଚ୍ୟୁତ, ଲଳନ ନେ ।ଲ ଅତ ପ୍ରଖର ଯେ; ଲଳା ଅଦ୍ୟ ହେବ ସେହିଠାର । ସୁଜନେ ହେ ।୯। ଟେକ ଅଚ୍ୟୁତର ବୋଲ; ଟଳବକ ପୃଥ୍ୱୀ ହେଲେ ଦଫାଳ ଯେ ଟାପର ମଣିବେ ମୂତମେଳ । ସୁଜନେହେ ।୧୦। ଠିକଣା ଅଚ୍ୟୁତ କଲେ ଠ ଡନ ବ ମେ ପାଅଁ ରଖିଲେ ଯେ ଠକାଯିବ ମୀନ ଶନ ଡଲେ । ସୁଜନେ ହେ ।। ଡାକ କହଇ ଅଚ୍ୟୁତ ଡାଙ୍କଣାଗୋଳ ଲଗାଇଲେ କ୍ଷତ ଯେ ଡର ଘାତ ଘଟେ ପଶିବଟି । ସୁଜନେ ହେ ।୧୨। ତମାଳ ଅଚ୍ୟୁତ ବାଇ ତମାଳଆ ହରବର ଲଗାଇ ଯେ ତମେ ମରବେ ଦର୍ଗ୍ଣି ହୋଇ । ସୁଜନେହେ ।୧୩। ଅଚ୍ୟୁତ

ଯୋଡ଼ଇ ଗୀତେ ଏକାକ୍ଷରେ ଜପା ଯେତେ ମୋ ଭକ୍ତେ ହେ ଅବଶ୍ୟ ଲୀଳା ଦେଖିବେ ନେତ୍ରେ ସୁଜନେ ହେ ।୧୪। ତଅରି ଅଚ୍ୟୁତ କହି, ଏ ବଂଶରେ ଅସ୍ତ୍ର ରହିବନାହିଁ ଯେ, ତନ୍ତ୍ରାରଣ୍ଡକେ ପାରିବ ସହି । ସୁଜନେ ହେ ।୧ । ଥିର ବାଣୀ ଅଚ୍ୟୁତର ଥିଲା ନଥିଲାକୁ ସମାନ କର ଯେ, ଠୁଳେ ନେଇ ହିବ ବେଳ କାହାର । ସୁଜନେ ହେ ।୧୬। ଦମ୍ଭେ ଭଣିଲେ ଅଚ୍ୟୁତ, ଦଧିସାର ଖୀରେ ଗର ଲୁଚିଛି ଯେ, ଦୃଶ୍ୟ ଲୀଳା ହୋଇବ ଉତ୍ପୃତ ସୁଜନେ ହେ ॥ ଧୀରବାଣୀ ଅଚ୍ୟୁତର, ଧବଳ କେତନ ଗିରି ଉପର ଯେ ଧରାଯିବ ସେହିଠାରେ ଶ୍ରୈବ । ସୁଜନେ ହେ ॥ ନିଷ୍ଠା କହିଲେ ଅଚ୍ୟୁତ, ତନ୍ତ୍ର ଘନରେ ପାଞ୍ଚ ମଣାତ ଯେ, ନ ରହିବ ମଦନ ଭ୍ରିତ । ସୁଜନେ ହେ ।୧୯। ପାଞ୍ଚିଣ ଅଚ୍ୟୁତ ମନେ, ପଳାଇବ ଶ୍ରୈରପରି ଦମନ ଯେ, ପୁଣି ପତିତହେବ ସ୍ନାହାନେ । ସୁଜନେହେ ଫନ୍ଦଣି କହେ ଅଚ୍ୟୁତ, ଫନ୍ଦାସେ ଅନେକ ବୁଡ଼ିଯିବତ ଯେ; ଫନ୍ଦା ଲାଭ ହେବ ଅପ୍ରମିତ । ସୁଜନେ ହେ ।୨୧। ବାଳୁତ ଅଚ୍ୟୁତ ବାଣି, ବଡ଼ଲୋକ ଧର୍ମ ହୋଇବେ ପୁଣି ଯେ, ବିନାଶରେ ଶିରେ ହେବ ଗଣି । ସୁଜନେ ହେ ।୨୨। ଭାବଣ ଅଚ୍ୟୁତ କହି, ଭାବବିନୋଦିଆ ଭାବ ଲଗାଇ ଯେ, ଗାଁଏ ଭୂପରି କରିବେ ଭାଇ । ସୁଜନେ ହେ ।୨୩। ମନାମ ଅଚ୍ୟୁତଙ୍କର; ମହତ୍ ପରୀକ୍ଷା ହେବ ନିକଟ ଯେ, ମନ ପୋଡିବ ମେଳିଅଙ୍କର ସୁଜନେ ହେ ॥ ଯହିଁକି ଅଚ୍ୟୁତ ଚାର । ଏତନେ ଘଟିଣ ହୋଇବ ସେହି ଯେ, ଜଗିରହି-ଅଛୁ ତହିଁ ପାଇଁ । ସୁଜନେ ହେ ।୨୫। ରଖିଛୁ ଅଚ୍ୟୁତ ଆଶା ଗ୍ରାଣ ଖୋଳଦନ ଫିଟିବ ବସା ଯେ, ରଙ୍କରନ୍ତେ ମିଳିବେ ଭରସା । ସୁଜନେ ହେ ।୨୬। ଲୟେ ଅଚ୍ୟୁତଙ୍କ ଦକ, ଲୀଳାଏ ସତେ ହୋଇବେ କଉତ ଯେ, ଲୋକେ ପ୍ରତ୍ୟକ୍ଷ ଯିବ ମନ୍ଦୁଖ ସୁଜନେ ହେ ।୧୭। ବଡ଼ି ନକହେ ଅଚ୍ୟୁତ; ବାଲ୍ୟପାଠଣା ପାଇଲୁସଙ୍କେତ

ଯେ; ବନ୍ଧ ମଙ୍ଗଳ ଅଣ୍ଟା ହୋଇବ ତ । ସୁଜନ ହେ ।୨। ମାରି ଅଚ୍ୟୁତ ଭଣିଲେ, ସାର ପଦମାନ ଠିକଣା କଲେ ଯେ, ସନ ବନା ଅଙ୍କରେ ରଖିଲେ । ସୁଜନେ ହେ ।୧୯। ସତ୍ୟ କହିଲେ ଅଚ୍ୟୁତ; ଶୁଣ ଶୁଣିବେ ସର୍ବେ ସ୍ୱପ୍ନମତ ଯେ, ସେହି ହେଲେ ଭଲ ହୋଇବ ତ । ସୁଜନେ ହେ ।୩୦। ସଂକ୍ଷେପେ ଅଚ୍ୟୁତ କହି, ଲେଖାବାର ଦିନ ଗୁପତେ ରହି ଯେ, ସମୂଳେ ସର୍ବସିଦ୍ଧ ସାଧର । ସୁଜନେ ହେ ।୩୧। ହରଷେ ଅଚ୍ୟୁତ ବୋଲେ, ହରି ବୋଲି କରତାଳି ମାଇଲେ ଯେ, ହରି ହରି ଶେଷରେ ପଦ କଲେ । ସୁଜନେ ହେ ।। କ୍ଷମେ କହିଲେ ଅଚ୍ୟୁତ, କ୍ଷଣକେ ମଧ୍ୟେ ଲେଖା କଳପତ୍ର ଯେ ଛନ୍ଦେ ଆଦ୍ୟ ପଦେ ନାମ ଖ୍ୟାତ । ସୁଜନେ ହେ ।୩୩। ଇତି ଶ୍ରୀ ଅଚ୍ୟୁତ ଗୋସାଇଁଙ୍କର ଭବିଷ୍ୟତ ଦ୍ୱିତୀୟ ବାଣୀ ସମାପ୍ତ ।

## ତୃତୀୟ ବାଣୀ

କହୁଅଛି ମନ ଶୁଣ ହେ, ଗୁଲ ଶ୍ରୀବୃନ୍ଦାବନ, ଭିତରେ ଜନମ ହୋଇଣ ବୃଥାରେ ଗଲା ଦିନ ।୧। ଗର୍ଣ୍ଣ କରିଛୁ ଯେଉଁ ଠାନ; ଦିନେ ହୋଇବ ଦୂର, ଘଡ଼ିକେ ଭେଳିକା ଲଗାଇ ପଣି ଯିବେଟି ଗୃର ।୨। ଉଦେ ହେଉଛନ୍ତି ଦେଖ ହେ। ଉଦେ ଗିରିକି ଗୃହେଁ ଗୃହ ଧେନଣ ତଜିକଲା ବସ୍ତ୍ରାରି ଚଉବାହା ।୩। ଛନକା ନୋହିଣ ମନ ହେ। ଘୃଣ କରନ୍ତୁ ଅଣ୍ଟ. କଗି ନ ପାରିଲେ ସୂମନ ମାର ନେତି ଖଣ୍ଟି ।୪। ଝଗଡ଼ା ମୂର୍ତ୍ତିରେ ତୁ ଅଛୁ ଝଗଡ଼ା ନୋହେ ସେହି । ନିର୍ମଳରେ ପ୍ରକାଶ ହେବ ନଳନବନ ତହିଁ ।୫। ଟାହି ଟାପରି ତୁ ମଣ ଦୁର୍ଜନେରେ ଶରଣ । ଠୁଳେ ପଶ ବାରୁ କହୁଛି ଏହିକଥା ପ୍ରମାଣ ।୬। ଉର ପୁରିଅଛି ଜଗତେ ଉର ରହି ନାଷ୍ଟିର୍ଭେ ଭମାଳ ମହିମା ନନ୍ଦବେ ଭେଣୁ ଭିଯୁ ମୋ ଚିତ୍ତେ । ଅଣ ଅକ୍ଷରେ

ବାରବାର ବଡଶର ଉପର । ତନ ତେତଶଙ୍କୁ ଜାଗିଥା ଛେଁହ୍ନ ନାହିଁ କାହାର ।୮। ଥିଲ ଲୋକମାନେ ଭାବିବେ ହରିଲ ନାଜଧନ ଦୁଃଖୀ ଲୋକେ ଦୟା କରିବେ ଅନାଦି ଭଗବାନ ।। ଧଦାଳି ହୋଇବେ ସମସ୍ତେ ଆଗେ ଧୂମ ଘୋଟିବ । ନାନା ରଙ୍ଗରେ ନାରାୟଣୀ ଲୀଳା ଲଗାଇବ ।। ପାଣ୍ଡଣ ଖପର ବାରେଜା ଅଛୁ ପଥ ଅବୋରି । ଫେଡ କହୁଅଛୁ ଜାଣିଥା ରେଲପଥକୁ ହେରି ।। ବାହି ଆସିବେ ସୈନ୍ୟବଳ ବାୟୁବ କୋଣଠାରୁ । ଭାର୍ଗି ହୁର ଉହୁଥିବେ ହେ। ଓଡଶା ମଣ୍ଡଳରୁ ।୧୨। ମହିମା ମେଳେ ହଙ୍ଗେ ଗୋଳ ହେବ ପଦ୍ମବନର । ଜାଣି ନ ପାରିବେ କେହି ଟି ପ୍ରଭୁ ମାୟାରେ ଭୋଳ ।୧୩। ରେଲଧାର ମହାନଦୀରେ ଯେବେ ହେବ ପ୍ରବେଶ । ଲୀଳା ନାନାପ୍ରକାରେ ଲଗିବ ସେ ଯେ ଓଡଶାଦେଶ ବନ୍ଦୋବସ୍ତ ହେବ ଓଡଶା କର ନେବ ନାକର । ହଂସାର ଉଚ୍ଛନ ହୋଇବ ପୃଥ୍ୱୀ ହୋଇବ ଟୋଳ ।୧୫। ସକଳ ଗ୍ରାମରେ ଗୁପତ ଭାବେ ଭକତ ଜନ୍ମ। ସଂକ୍ଷେପେ ଭକ୍ତ ଖୋଜିବେ ଦେଷ୍ଟନୋହଣ ଭୂପ ।୧୬। ହେତୁ ରଖିଥାଅ ଏତକ କଳ୍କି ଲୀଳା ହେବାର ଯାମର ଅଚ୍ୟୁତ ଛାବୁଛୁ ଜଗନ୍ନାଥ ଦ୍ୱାରରେ ।୧୭।

ଇତି ଶ୍ରୀ ଅଚ୍ୟୁତାନନ୍ଦଙ୍କ ବାଣୀ ସମାପ୍ତ ।

## ଚତୁର୍ଥ ବାଣୀ

ଶୁଣ ହୋ ଭକତ ଶ୍ରୁତରେ ପ୍ରଭୁ ଶ୍ରୀମୁଖ ବାଣୀ । କଳିରେ ଯେ ରୂପ ହୋଇବେ ପ୍ରଭୁ ସାରଙ୍ଗଧାଣି । ମହାନଦୀ ତଟ ଯୋବରା ଭାଳିଆବୋଦା ଘାଟି । କାଳିଅଢାଇଛି ସେଠାରେ ସୈନ୍ୟମାନଙ୍କ ଫେଣ୍ଟ ।। ହରିଦ ରମାଦି ସନ୍ତାନ ଅସ ହୋଇବେ ଠୁଳ ।୩। ସୈନ୍ୟ ଘେରିବେ ଲୀଳା ହେବ ଚହଳ ।୩। ରାମଚନ୍ଦ୍ର ଦେବ

ପନ୍ଦରଅଙ୍କ କାର୍ତ୍ତିକ ମାସ । ବୈଶାଖ ପର୍ଯ୍ୟନ୍ତ ଲାଗିବ ଲୀଳା ଗୋଳ ଅଶେଷ ।୪। କୋଟି କୋଟି ଭକ୍ତ ଅସିବେ ପ୍ରଭୁ ଗୁଣକୁ ଗାଇ । କଟକକାଳୀରେ ଯୁଧିଷ୍ଠିର ଦେବ ଥିବେଠିକେହ୍ନେ ।୫। ପଦ୍ମବନ ଭୂଅସୁରୀର ଯାଏ ହୋଇବେଠ୍ଲ । ଯୋଗାନ୍ତ ନାଗନ୍ତ ଯୋଗୀଏ ଜ୍ଞାନୀ ହେବେ ପ୍ରବଳ ।୬। ଯୋଗମାୟା ଖେ କରିବେ ଯୋଗୀ ହୋଇବେ ଭୋଳ । ଡାଙ୍କିଣୀ ଘେରିବେ ଜଗତ ଦୁଷ୍ଟ ହେବେ ପ୍ରବଳ ॥ ଏବଳଷ ସାଧୁ ଘୋଟିବେ ଘୋରକଳି ଲାଗିବ । ସହିଁମା ବଳମ୍ବୀ ସାଧୁଙ୍କ ମିଥ୍ୟା କହିଣ ଯିବ ॥ ବାଳକବୃନ୍ଦମାନ ପ୍ରବ ଭକ୍ତି ହୋଇବେ ମେଳ । ଖଣ୍ଡମାନେ ମିଳି ବହିବେ ଧନ ଜନ ସକଳ ବଡ଼ ଲୋକଙ୍କର ଧନକୁ ବହି ନେବେ ସକଳ । ମହାନଦୀ ଜଳେ ପକାଇ ହେବେ ସେକାଳେ ମେଳ ॥ ଦାନସେ କୁହୁଡ଼ି ଘେରିବ ରାଜ୍ୟପ୍ରାୟ ହୋଇବ । କଟକ କଟୀର ଅବସ୍ଥା କେହୁ ମୁଖେ କହିବ ହରିଦ ରାମାଦ ସାଧୁଏ ଠୁଳ ହୋଇଣଥିବେ । ସତର ହଜାର ନାଗାନ୍ତ ଅସିଣ ପ୍ରବେଶିବେ ॥ ସେବେଳେ ଲଙ୍ଗୁଳା ତେଲଙ୍ଗ ଉତ୍ତରରୁ ଆସିବେ । ଦକ୍ଷିଣଦିଗରୁ ତେଲଙ୍ଗା ରଣରଙ୍ଗା ହୋଇବେ ଋଷିକୁଲ୍ୟାଠାରୁ କାଶୀ ନଗ୍ରଯାଏ ଯେ ବେଢ଼ି ରେ । ସେଠାରୁ ସମ୍ବଲପୁରକୁ ସବୁ ବେଢ଼ି ଅସିବେ ॥ ପଶ୍ଚିମ ଦିଗରୁ ଦମନ ବଳ ଧାଇଁ ଆସିବେ । ଅମର ହବରେ ପଶିଣ ନରହତ୍ୟା କରିବେ ॥ କାଶୀନଗ୍ରେ ଗୋଳ କରିବ ବହୁ ସୈନ୍ୟଙ୍କୁ ନାଶି । ସମ୍ବଲପୁରରେ ପ୍ରବେଶି ଗୋଳ ହେବ ବିଶେଷି ॥ ଯୋଗମାୟା ତହିଁ ତୋଡ଼ାଇ ବହୁ ସୈନ୍ୟ ନାଶିବେ । ଦମନ ପଳାଇ କଟକ ନଗ୍ରେ ଆସି ମିଳିବେ ॥ ବହୁତ ତନୁଜା ଦେଖାଇ ଭୋଗ ଅମ୍ବା ଲାଗିବ । ଯୋଗିନୀ ଭକ୍ଷିବେ ଦମନ ବଳ ତହୁଁ ଛାଡ଼ିବ ।୧୮। ନୀଳାଚଳନାଥ ତେ ବନ୍ଦ ସେତେବେଳେ ଧୂଳି ସହି ନପାରିଣ ଭକତଙ୍କ ସଙ୍ଗେ ନିବାସି ୧୯. ନଟରେ ସ୍ଥଳ ସାରଣ

ପ୍ରଭୁ ହେବେ ବାହାର । ତେର ଯୁଆଙ୍ଗ ସଙ୍ଗରେ ଚଢ଼ି ଅଶ୍ୱଉପର
ରାମଚନ୍ଦ୍ର ଦେବ ସେକାଳେ ଗୁପ୍ତ ବେଶରେ ଥିବେ । ୧୬ । ଚଳ
ଧନା ପର୍ବତ ସେତୁ ଭ୍ରମୁଥିବେ ।୨୧। ପ୍ରଭୁଙ୍କ ମହିମା ନ ଜାଣି
ଗଞ୍ଜି ହେଉଥିବେ । କଳିକ ଵର୍ଷରେ ଅସିଶପ୍ରବେଶ ହେବେ ୨୨
ନ ଚିହ୍ନିବେ କେହୁ ରାଜାଙ୍କୁ ରାଜା ମଣ୍ଡନେ ଥିବେ ॥
କାଠଯୋଡ଼ିତଟେ ଦେଖିଣ ରଣୋତ୍ସବେ ହେବେ ।୨୩। କାଳିଆ
ବୋଦାରେ ସାଧୁଏ ଲୀଳା ଖେଳା ହେବେ । ନାନା ଉପଦ୍ରବେ
ରହିଣ ପଭୁ ଗୁଣ ଘୋଷିବେ ।୨୪। ଭୀମସେନ ପ୍ରଭୁ ହେବେ ଯେ
ହଂସନାଥଙ୍କ ପାଶ । ତାଙ୍କ ସଙ୍ଗେ ହଂସନାଥ ଯେ କହୁଥିବେ
ଭବିଷ୍ୟ ।୨୫। ଅଷ୍ଟଚଣ୍ଡୀଙ୍କୁ ସଙ୍ଗେ ନେଇଣ ଯୋଦ୍ଧବେଶେ ପ୍ରବେଶ
ସାରଦା ଖେଳିବେ କଟକେ ଭକ୍ତ ହୋଇବେ ବଶ ॥ ଅଲେକିତ
ଲୀଳା କରିବେ ଦେବୀ ଝଙ୍କଡ଼ବାସୀ । ପଦ୍ମେ ଭକ୍ତ ଦେଖି
ଉଲ୍ଲାସ ହେବେ କଟକବାସୀ ।୨୭। କଳା ଧଳା ଅଶ୍ୱ ଉପରେ ପ୍ରଭୁ
ହେବେ ବାହାର । ଭୁବନେଶ୍ୱରରେ ରହିବେ ପ୍ରଭୁ ରଙ୍ଗାଧର ॥
ଖଣ୍ଡଗିରି ସିଦ୍ଧ ସ୍ଥାନରେ ଯେତେ ଅଛନ୍ତି ଋଷି । ସକଳେ ବାହାର
ହୋଇବେ ପ୍ରଭୁ ନାମକୁ ଘୋଷି ।୨୯। ସକଳେ ସେ ବେଳେ
ଠୁଳ ଯେ ହେବେ ବିନ୍ଦୁସାଗର । କପିଳେଶ୍ୱର ଭେଟି ଦେଇ
ହୋଇବେ ସୂପକାର ।୩୦। ନିଜାଠା ଅଂଶ ଯେ ଭୁଲିଗ ସବୁ
ଦେଖୁଣଥିବେ । ମାୟାଧର ଲୀଳା କାହୁଁ ସେ ଅବା ଜାଣି
ପାରିବେ ।୩୧। ଭ୍ରମରେ ପଳାଇ ଯାଇଣ କୋଣାର୍କରେ ମିଳିବ
ମହାଯୁଦ୍ଧ ଦେଖି ସେଠାରେ ଭ୍ରମଜାତ ହୋଇବ ।୩୨। ସାଗରେ
ସାଗରେ ପଳାଇଯିବେ ସେ ଶୃଦ୍ଦବାଳ । ବରେକା ଧାଇଁଣ ଦମନଙ୍କୁ
କରିବଟି ବଳ ॥ ଯାଜପୁର ନଗ୍ରେ ସେକାଳେ ଶୂନ୍ୟବାଣୀ ହୋଇବ
ଲଖବାଚା ପଡ଼ିଆରେ ଯେ ଲକ୍ଷେ ବଳୀ ପଡ଼ିବ ॥ ସକଳ ଦଗନ୍ତୁ
ଦେବତା ଦେବୀ ହେବେ ବାହାର । ନରରଙ୍ଗେ ମେଳ ଖେଳିବେ

କଟକ ଯେ ଛାଡ଼ିବ ।୩୯। କ୍ଷଣିକରେ ଛାଡ଼ି ପଳାଇଯିବ ନିଜ ଠାଁ
ଅଂଶ । ଜଗନ୍ନାଥ ପ୍ରଭୁ କଟକେ ହୋଇବେ ଯେ ପ୍ରବେଶ ।୪୦।
ସନ୍ଥଙ୍କ ମଧ୍ୟରେ ମିଳଣି ପ୍ରଭୁ ଦେବେ ଦର୍ଶନ । ସାଧୁମାନେ ଚନ୍ଦ୍ର
ସେବିବେ ପ୍ରଭୁ ଜଗତ ବନ୍ଦନ ।। ଜୟଧ୍ୱନି ଟୋ ଶବଦ ଜଗତରେ
ପୂରିବ । ଯୋଗମାୟା ଖେଳ କୁହୁକ ଜାଲ ପ୍ରାୟ ଦେଖିବ ।। ଦାମ୍ଭିକ
କୁଟିଳ କପଟୀଙ୍କର ବଚନମାନ । ସେକାଳେ ହୋଇବ ଖଣ୍ଡନ
ପ୍ରଭୁ ଥିବେ ମଣ୍ଡନ ।। ପଞ୍ଚସଖା ପଞ୍ଚ ପାଣ୍ଡବେ ସର୍ବେ ହୋଇବେ ଠୁଳ
କାଳିକା ଚଣ୍ଡୀ ଯେ ସେକାଳେ ତାଙ୍କ ମଧ୍ୟରେ ମେଳ ।୪୧। ଭୁଆଶୁଣୀ
ସଙ୍ଗେ ନେଇଣ ଯିବେ ସାରଦା ପାଶ । ଅର୍ଘ୍ୟଥାଳୀ ଘେନି ପୂଜିବେ
ଦେବୀ ହୋଇ ଉଲ୍ଲାସ ।। ଅମବତୀରୁ ବାହାର ହେବେ ସଂଖାନ୍ତ
ଯୋଗୀ । ଛତିଶ ବାଟରେ ପ୍ରବେଶି ନାନା ରୂପରେ ଭୋଗୀ ।୪୨।
ଲଣ୍ଡଭଣ୍ଡ ହୋଇ ଭକତଗଣ ସଙ୍ଗରେନେଇ । କାଳିଅବୋଦାରେ
ପଟବେଶି ପ୍ରଭୁ ଗୁଣିକୁ ଗାଇ ।୪୩। ଷୋଳ ମଠର ଯେ ମହାନ୍ତ
ସର୍ବେ ହୋଇବେ ଠୁଳ । ଜଗତ ଦେଖିବ ସେକାଳେ ସିନା ବହୁ
ଉଜ୍ଜ୍ୱଳ ।୪୪। ଏକାକ୍ଷରେ ନାମ ଭଜନ କରୁଥିବାର ଜନ । ସମସ୍ତ
ସେକାଳେ ଜାଣିବ ଭକ୍ତ ହୋଇବ ପୂର୍ଣ୍ଣ ।୪୫। ଧର୍ମରେ ଆଶ୍ରିତ
ସେ ଜନ ସଦା ହୋଇଣଥିବ । ଭୈରବୀଚକ୍ରରୁ ସେବେଳେ ସିନା
ସେହୁ ବଞ୍ଚିବ ।୪୬। ପ୍ରଭୁଙ୍କର ପ୍ରତିନିଧି ଯେ ପଞ୍ଚପାଣ୍ଡବଗଣ ।
ଅସ୍ତ୍ର ଶସ୍ତ୍ର ଧରି ବାହାର ହେବେ ଯେ ଦେବଗଣ ।୪୭। ଟିକରି
ଗୋହରୀ ଯୁଦ୍ଧକୁ ପ୍ରଭୁ ହେବେ ବାହାର । ପାମର ଅଚ୍ୟୁତ କହଇ
ଦୋଷ ନ ଧର ମୋର ।୪୮। ନବଲକ୍ଷ ସାଧୁ ପୂରିବେ ପୁରୀଠାରୁ
କଟକ । ଭୁବନେଶ୍ୱରରେ ରହିବେ ନାଗାନ୍ତ ଯେ ଅନେକ ।୪୯
କଟକ କାଠୀରେ ଲଙ୍ଗୁଳି ଧରି ହୋଇବେପୂର୍ଣ୍ଣ । କାଳିଅବୋଦାରୁ
ସହସ୍ରେ ଦୁଷ୍ଟ ହେବେ ନିଧନ ।୫୦। ସୁଭଦ୍ରା ନଈରେ ତେତିଶ
ଦମନ ଯେ ମରିବେ ।। ଯାଜପୁରରେ ପାଞ୍ଚହଜାର ତେଲଙ୍ଗା ଯେ

ଚଳିବ ।୫୧। ପଥର ମୂର୍ତ୍ତେଇଠାରୁ ଯେ ବ୍ୟାଘ୍ର ବାହାର ହେବ ଦେଖିବ ଅନ୍ଧ। ସୈନ୍ୟ ଭାଙ୍ଗିବ ଏକା ଭକତ ଥିବ ।୫୨। ଦ୍ୱାଦଶ ଦୁର୍ଗର ଗୁମ୍ଫାରେ ସେ ବେଳରେ ଫିଟିବ । ଗଡ଼ଗଡ଼ା ମହାଦେବରେ ଚଉଁର ଯେ ପଡ଼ିବ ।୫୩। ଧବଳ ଲିଙ୍ଗରେ ଯଜ୍ଞ ଯେ ହୋଇବଟି ଅପାର । ବହୁତ ଭକତ ମିଳିବେ ଈଶ୍ୱରଙ୍କ ପାଶର ॥ ହରିହରପୁର କମ୍ପିବ ଭକ୍ତ ଧାଇଁ ଆସିବେ । ରତ୍ନଯୋଡ଼ିମ୍ବ ଭିବସିବେ ଭକ୍ତମାନେ ଦେଖିବେ ।୫୪। ପ୍ରଭୁ ଗୁଣ ଗୁଣି ଭକତେ ହେବେ ହୋଇଣ ଧୀର । କହଇ ଅଚ୍ୟୁତ ଦାସ ଯେ ସଦା ଯୋଡ଼ିଣ କର ।୫୬।

ଇତି ଶ୍ରୀ ଅଚ୍ୟୁତାନନ୍ଦଙ୍କ ଚତୁର୍ଥ ବାଣୀ ସମାପ୍ତ



## ହାଡ଼ୁ ଦାସଙ୍କ ଆଗତ ଭବିଷ୍ୟ ମାଳିକା

କର୍ତ୍ତୁନେଇ ଗୁଣ ସୃଜନେ କଳିଯୁଗ ବିସ୍ତର । କଳଙ୍କି ରୂପରେ ଜନମ ହେବେ ଶ୍ରୀଚକ୍ରଧର ॥ କ୍ଷୀରଧାର ବହି ଯାଉଛି ସ୍ଥାନ ଅମରାବତୀ । ଖଣ୍ଡଗିରି ସ୍ଥାନ ଗୁପତେ ସିଦ୍ଧସାଧୁ ଅଛନ୍ତି ॥ ଗୁମ୍ଫାରେ ଭଜନ ଲାଗିଛି ସାନନ୍ଦନ ମଧ୍ୟରେ । ଗୁପତେ ଖେଳ ସେ ଖେଳିବେ ପ୍ରଭୁ ସେହି ଠାବରେ ॥ ଘଡ଼ଘଡ଼ି । ପ୍ରତିମା ପ୍ରକ୍ଷ ଲିଙ୍ଗରାଜଙ୍କପୁର । ଘୋର କଳିମହା ମହାଭାରତ ହେବ ସେହି ଠାବର ॥ ଉଦୟ ବଟେଶ ଠାବରୁ ଲୀଳା ଉଦୟ ହେବ । ଅନାହତ ଧ୍ୱନି ଶବଦେ ତନ୍ନିପୁର କମ୍ପିବ । ଚତୁର୍ଦ୍ଦିଗ ଲୋକେ ସେଠାରେ ଆସି ହୋଇବେ ଭେଟ । ଚଉରାଶି ଯେବାରେ ଖଟିବେ ପ୍ରଭୁଲୀଳା ନାୟକ ॥ ସ୍ଥାପୁ ସ୍ତୁତି ଭକ୍ତ-ମାନେ ସେ ସ୍ତବ କରିବେ ଠାବ । ଛତିଅମଠର ମହିମା ତହିଁ ପ୍ରକାଶ ହେବ ॥ ଜାମଳା ନଦୀର ଧାରଟି ପଦ୍ମ ପୋଖରୀ ଖ୍ୟାତ ଜନମ ହୋଇବେ ଆସନ୍ତି ପ୍ରଭୁ ଶ୍ରୀଜଗନ୍ନାଥ । ଝାଡ଼ ଖଣ୍ଡଗିରି

ଗୁମ୍ଫାରେ ପ୍ରଭୁଙ୍କର ସେଠାବ । ଝଲମଲ ଜ୍ୟୋତି ବାହାରେ ଲୀଳା
ଚହଟ ହେବ ॥ ନ ରହୁଣ ସ୍ୱୟଂ ଅଠକ୍ର ନର ଦେହରେ ଚେପ
ଲୀଳା ବେଳକୁ ଯେ ହୋଇବେ ନୀଳ ଧବଳ ରୂପ ॥ ଠକ ବନାହାଁ କି
ଏକଥା କଷ୍ଟେ ହୋଇବ ଦିନେ । ଠାକ ହେଛନ୍ତି ଭରସା କରି
ଭକତମାନେ ॥ ଠାବକରି କହେ ଅମରାବତୀ ପୂର୍ବ କଣରେ । ଠିକ
କରି କହିଲେ ହାଡ଼ୁଦାସ କମାର ॥ ଡାକେଣୀ ମାତବେ ଅନେକ
ଡର ଘୋଟିବ ଆଗେ । ଡକାଯୁତ କଳି କରିବେ ସାଧୁମାନଙ୍କ
ସଙ୍ଗେ । ତମାଳି ଶିଖିବେ ଅନେକ ମାୟା ତପସ୍ୱୀମାନେ । ତମପଣ
ନାଶ ହୋଇବେ ତାଙ୍କର ସମାନେ ॥ ଅଣହେତୁ ବଦ୍ୟା ଶିଖିବେ
ଅଣହେତୁରେ ପଡ଼ି । ଅସାଧୁ ସଙ୍ଗରେ ମାତବେ ଦେଇ ଠେକା
କଉଡ଼ି । ସ୍ତିରୀ ସଙ୍ଗତରେ ମାତିବେ ଥୋକେ ମଯ୍ୟାତପସ୍ୱୀ । ଟେକ
ଶାହାସ୍ତ୍ର କହୁଣ ଜ୍ଞାନ କହିବେ ହସି । ସ୍ଥାନ ଛାଡ଼ିଯିବେ ଦେବତା
ସ୍ଥାନେ ରହିବେ ନାହିଁ । ଥୋଇଲା ଠାବରୁ ପଦାର୍ଥ ନେଉଥିବେ
ଚୋରାଇ ॥ ଦିନୁ ଦିନ ମହାପ୍ରବଳ ଘୋର କଳିହୋଇବ । ଦିବସେ
ଅନ୍ଧାର କୁହୁଡ଼ି ବଢ଼ି ଆସିବ ॥ ଧନ୍ଦହୋଇ ଲୋକେ ମରିବେ ଧର୍ମ
ହୋଇବ ନଷ୍ଟ । ଧୂମ ଉଦେ ହେବ ଆକାଶୁ ଘୋର ନାନା ପ୍ରକଟ ।
ନୀଚଲୋକ ଉଚ୍ଚ ହୋଇବେ ନାମ ଠେକ ଦେଖାଇ । ନିଗମ
ବଚନ କହୁଣ ଜ୍ଞାନ କହିବେ ସେହି ॥ ପରଦ୍ରବ୍ୟ ପର ପଦାର୍ଥ
ବଳେ ହରିବେ ଦୁଷ୍ଟ । ପ୍ରମାଦ ପଡ଼ିବ ଅନେକ ପ୍ରାଣୀ ହୋଇବେ
ନଷ୍ଟ ॥ ଫେରିଫେରି ପାଣି ବର୍ଷାଇ ଇନ୍ଦ୍ର ବୃଷ୍ଟି କରିବ । ଫଳହାନି
ହୋଇ ଧରଣୀ ଅଦଭୁତେ କମ୍ପିବ ॥ ବୋଇଲ ବୁଢ଼ାଏ ବଳଦ ଗୃହୀ
କରିବେ ଗୃହ । ବୀଜ ନପାଇବେ ବଳରୁ ହାନି ହୋଇବ ଶସ୍ୟ
ଭୂମି ଉତପାତ ହୋଇବ ଦଶଦିଗ ଅନ୍ଧାର । ଭଣିଲେ ଆଗତ ଭବିଷ୍ୟ
ହାଡ଼ୁଦାସ କମାର ॥ ମହା କଳିଗୋଳ ଚହଲ ମନ୍ଦ ହୋଇବ
ମୁକୁଳ ଦେବଙ୍କ ଅଙ୍କରେ ସୈନ୍ୟ ମାଡ଼ି ଆସିବ ॥ ଯୁଗଶେଷ କଳି

ଭାରତ ଯୁଦ୍ଧ ହୋଇବ ଘୋର । ଯମ ମା ସାତଭଉଣୀ ଧରିଥିବେ ଖପର ॥ ରକତ ନଦୀ ଯେ ବହିବ ତକିପୁର ପାବେଣ । ଚଉନ, ଗୁଲଇ ଧାଇଁବେ ନବକୋଟି କାତ୍ୟାନୀ । ଲଭ ଝଣ୍ଡେଟିର ମଧ୍ୟରେ ଯୁଦ୍ଧ ସମର ହେବ । ଲଙ୍ଗଲିଜ ଷେଣ ମଧ୍ୟରେ ଭଇରବୀ ଡାକିବ ॥ ବାହାର ହୋଇବେ ଗୀରୋଜା କରେ ଖପର ଧରି । ବାରଣ ବେଳକୁ ଭକ୍ତକୁ ରାଖିରଖିବେ ହରି ॥ ସମ୍ବଲର ପାଞ୍ଚସହସ୍ର କଳା ହୋଇବ ଶେଷ । ସତ୍ୟଯୁଗ ଅଦ୍ୟ ହୋଇବ ଶୁଦ୍ଧଯୁଗ ପ୍ରକାଶ । ସିଦ୍ଧ ସାଧୁମାନେ ବଢ଼ିବେ ସଭା ଅନେକ କରି । ସେହି ସହସ୍ରକୁ ପୂଜିବେ ପଞ୍ଚୁଅର ଅବୋରି । ହରି ବେଦରେ ମାତିବେ ହରି ଭକତମାନେ । ହରଷ ହୋଇଣ ଦେଖିବେ ଦୁଃଖୀ ଦରିଦ୍ର - ମାନେ ॥ ଫିଟିବ ପ୍ରଜାଙ୍କ କଷଣ ପାତକୀ ହୋଇବେ ନାଶ । କ୍ଷମେ ହାଡ଼ିଦାସ ଭଣିଲେ ଛନ୍ଦ ପଦ ଭବିଷ୍ୟ । ଷପ୍ତଦନ ମଧ୍ୟ ଅନ୍ଧାର ଘନ ଯୁଦ୍ଧ ହୋଇବ । ସୁଦର୍ଶନ ଚକ୍ର ବହିଣ ଦୈନ୍ୟ ଭିମୂର୍ତ୍ତି ଥିବ ॥

ଇତି ଶ୍ରୀହାଡ଼ିଦାସଙ୍କ ଅତୀତଭବିଷ୍ୟ ମାଳିକା ସମାପ୍ତ ।

## ଶ୍ରୀଗୁରୁ ବାଣୀ

ଶୁଣରେ ମନୁଅ ଗୁରୁଙ୍କର ପାଠ । ଏପାଠ ପଢ଼ିଲେ ଚୋଟେ ଦଶୁଥିବ ବାଟ ॥ ଅମଡ଼ା ମାଡ଼ିରୁ ପଥେ କରିଲେ ଗମନ । ତାହା କଣ୍ଟା ନମାଡ଼ିବୁ ଜାଣିଲେ ଭଜନ ॥ ବଙ୍କନାଳ ମୂଳଧାର ଯେବେ ଜଗିପାରୁ । ତେବେ ଗୋଲହାଟେ କରି ଯାଇ ଅସିପାରୁ ॥ ଅନାଦି ଅଲେଖ ନିରଞ୍ଜନ ପରଂବ୍ରହ୍ମ । ଅବ୍ୟକ୍ତ ପୁରୁଷ ହରି ଜଗତ ଜୀବନ ॥ ତାହାଙ୍କ ଲୀଳା ଏହି ଜଗତେ ପୂରିଛି । ତାହାଙ୍କୁ ଚାହିଁଲେ ମନ ଭୟନାହିଁ କିଛି ॥ ସଦ୍‌ଗୁରୁ ପାଦେ ସେବା ହୁଅ ଶୁଦ୍ଧମତ । ଶ୍ରୀଗୁରୁ ଅଜ୍ଞାରୁ କାହିଁ ନଥିବଟି ଭୀତ ॥ ଦାସ ହେବେ

ସେବା କରି ହୁଅ ଅଜାମର । ଶୁଣ ତୁ ଅଚ୍ୟୁତ ପ୍ରଭୁ ମଧୁ ମା ବାଗୁର ॥ କରୁଣାସାଗର ପଦେ ଦାଅ ମତ ତୋର । ଅବଶ୍ୟ ଭେଟିବୁ ପ୍ରଭୁ କମଳାଙ୍କ ବର ॥ ଓଡ଼ିଶାଦେଶେ ସେ ପ୍ରଭୁ ନାମକରି ଜାରି । ଶତନ୍ୟ ଉଡ଼ାଇବେ ଧ୍ୱଜା ପ୍ରଭୁ ଦାଇତାରି ॥ ଗୁରିମଠଗୁରି ଠାଠ କଅଁଶ ଉଠିବ । ଭକ୍ତମାନଙ୍କ କଷଣ କ୍ଷଣକେ ମେଣ୍ଟିବ ॥ ସେ ହରି ପଦ ସ୍ମରଣ କରହୋ ଅଚ୍ୟୁତ । ଦେଖିବୁ ଗୁପ୍ତରୀଲୀଳା ଅବ୍ୟକ୍ତ ମୁରତ ॥ ପତିତପାବନ ପ୍ରଭୁ କମଳାରମଣ । ଭକତଙ୍କ ପାଇଁକଲେ ଏଲୀଳା ଭିଆଣ ॥ ସର୍ବଲୀଳା ମଧ୍ୟେଯେ ଗୁପ୍ତରୀଲୀଳା ସାର । ନରାକାର କହୁଛନ୍ତି ଅଚ୍ୟୁତ ଆଗର ॥ ଖଣ୍ଡିଗିର ବରପୁତ୍ର ଦେବ ଜନାର୍ଦ୍ଦନ, ଶିରେଣାଢ଼ୀ ବାନ୍ଧି ପ୍ରଭୁ ହେବେ ସେ ସ୍ଥାନ ॥ କୋଟି କୋଟି ଭକ୍ତ ସ୍ଥାନେ ସ୍ଥାନେ ହେବ ମେଳ । ସେତେ-ବେଳେ ଜଗତ ଯେ ଦିଶିବ ଉଜ୍ଜ୍ୱଳ ॥ ନ କର ମନେ ହୁଲେଣି ଏକ କମ୍ବୁପାଣି । ଭକତବତ୍ସଳ ପଦ୍ମପାଦ ସେବା ଜାଣି ॥ କଳି କଳୁଷନାଶନ ପ୍ରଭୁଙ୍କର ଭେଟ । ଅବଶ୍ୟ ଭେଟିବୁ ଭକ୍ତ ମନେକର ଆସ୍ଥ ॥ ଗୁପ୍ତସ୍ଥାନମାନ ସେହି ବେଳରେ ଭେଟିବ । ଏକାଦ୍ରବନର ଚୋର୍ଷ କେ ଅବା କହିବ ॥ ସତଭ୍ରଷ୍ଟା ଲୋକମାନେ ମୃତ୍ୟୁରେ ଭେଟିବେ ହିଂସା କପଟ ସେତେବେଳେ ସବୁ ପାଶୋରିବେ ॥ ସାଧୁଜନ ମାନଙ୍କର ନାମ ଝୋଣ ହେବ । ଲୋକମାନଙ୍କର ଦୁଃଖ ସେ କାଳେ ମେଣ୍ଟିବ ॥ ଶ୍ରୀହରିଙ୍କ କୃପାରୁ ମୁଁ କହିଲି ଏମାନ । ଅଚ୍ୟୁତଦାସ ତୁ ଭଜ ଜଗତ ଜୀବନ ॥ କାର୍ତ୍ତିକ ଶୁକ୍ଳଦାଶମୀ ଦିନ ମୃତ୍ୟୁହେଲା ଶୁଣ ତୁ ଅଚ୍ୟୁତ ଦାସ ହୁଏ ଏବେ ଫିଲା ॥

ଇତି ଶ୍ରୀ ଅଚ୍ୟୁତାନନ୍ଦଙ୍କ ଶ୍ରୀମୁଖବାଣୀ ସମାପ୍ତ ।

—ସମାପ୍ତ—

---

ମୁଦ୍ରାକର—ଶ୍ରୀ ବୈଦ୍ୟନାଥ ନାୟକ; ଧୀଠି ଦାସ, କଟକ